# କୁନା ପାଇଁ ଗୀତ

ବିନୋଦିନୀ ପାତ୍ର



# କୁନା ପାଇଁ ଗୀତ

ଲେଖିକା - ବିନୋଦିନୀ ପାତ୍ର
ରମାଦେବୀ ମହିଳା ମହାବିଦ୍ୟାଳୟ
ଭୁବନେଶ୍ୱର

ପ୍ରଚ୍ଛଦ
ଓ
ଅଳଂକରଣ - ହାଡିବନ୍ଧୁ ରାଉତ

ପ୍ରଥମ ପ୍ରକାଶ :- ୧୯୯୭,
ବିଜୟା ଦଶମୀ

ମୁଦ୍ରଣ : ଓଁକାର ପ୍ରେସ୍,
ଆଚାର୍ଯ୍ୟ ବିହାର, ଭୁବନେଶ୍ୱର,

ମୂଲ୍ୟ :- ପଚିଶି ଟଙ୍କା ମାତ୍ର
ସାଧାରଣ - କୋଡିଏ ଟଙ୍କା ମାତ୍ର

## Kuna Pain Geeta

***Writer*** **- Binodini Patra**

*Published by :*
U.K. Publications
**Mallikashpur, Balasore**

*Cover*
*&*
*Design :* **Hadibandhu Rout**

*Printed at :*
**Omkar press,**
Acharya Vihar, Bhubaneswar

Library Price : **Rs. Twenty Five only**

Paper back Price : **Rs. Twenty only**

# କୃତଜ୍ଞତା

କାଁ ଭାଁ ପ୍ରକାଶିତ
ମୋର ଶିଶୁ କବିତା ଗୁଡିକ ପଢି ଯେଉଁ
ଅନ୍ତରଂଗ ସାରସ୍ୱତ ବନ୍ଧୁ ଓ
ଶୁଭେଚ୍ଛୁମାନେ ମୋତେ ବଧେଇ
ଜଣେଇଛନ୍ତି, ଆହୁରି ଲେଖିଚାଲିବାକୁ ପ୍ରୋତ୍ସାହିତ କରିଛନ୍ତି,
ସେଇ ସମସ୍ତ ବନ୍ଧୁ ମାନଙ୍କୁ ଏ ଅବସରରେ ସପ୍ରେମ ସମ୍ମାନ ଓ
କୃତଜ୍ଞତା ନ ଜଣେଇ ରହିପାରୁନାହିଁ ।

ସହୋଦର ତୁଲ୍ୟ ଶିଳ୍ପୀ ହାଡିବନ୍ଧୁ ଏ
ପୁସ୍ତକଟିର ଅଙ୍ଗସଜ୍ଜା ଓ ପ୍ରଚ୍ଛଦ ଅଂକନ ପାଇଁ
ଯେଉଁ ପ୍ରକାରେ ଅକୁଣ୍ଠ ଶ୍ରମ ସ୍ୱୀକାର
କରିଛନ୍ତି - ସେ ପାଇଁ ମୁଁ ତାଂକୁ ଏ ଅବସରରେ
ସଶ୍ରଦ୍ଧ ସ୍ମରଣ କରୁଛି ।

ମୋର ସ୍ୱାମୀ ତଥା ଦୁଇ ପୁଅ ପୁପୁ ଓ କିଟି ଙ୍କର
ନିରଳସ ସହଯୋଗ ଏ ପୁସ୍ତକର ଭୂମିଷ୍ଠ
ହେବା ମୂଳରେ ମୋତେ ଯଥେଷ୍ଟ ସହାୟ
ହୋଇଛି । ସେମାନଙ୍କୁ ମଧ୍ୟ ଏ ଅବସରରେ
ସମ୍ମାନ ଓ ଆଶୀର୍ବାଦ ଜଣାଉଛି ।

ଓଁକାର ପ୍ରେସ୍‌ର ପ୍ରୋପ୍ରାଇଟର ଶ୍ରୀମତୀ ଆଚାର୍ଯ୍ୟ
ଏ ପୁସ୍ତକଟିକୁ ଆଗ୍ରହ ଓ ଯତ୍ନ ସହକାରେ
ମୁଦ୍ରିତ କରିଥିବାରୁ ତାଂକୁ
କୃତଜ୍ଞତା ଓ ଶ୍ରଦ୍ଧା ଜଣାଉଛି ।

ବିନୋଦିନୀ ପାତ୍ର
ଲେଖିକା

# ସୂଚୀ

# ବହିଠାରୁ ବନ୍ଧୁ ନାହିଁ



ବହିଠାରୁ ବଡ କିଏ ?
ମୂରୁଖ ଲୋକଙ୍କୁ ବୁଦ୍ଧି ବତାଏ ସେ,
ଅନ୍ଧକୁ ଲଉଡ଼ି ପ୍ରାୟେ ।
ବହିଟି ବଡ ସୁନ୍ଦର,
ରଙ୍ଗ ବେରଙ୍ଗ ର ଚିତ୍ର କାହାଣୀରେ
ହରେ ମନ ପିଲାଙ୍କର ।



ସଜାଡ଼ି ମଲାଟ ଦେଇ

ବହିଟିକୁ ରଖ ପଢ଼ା ଟେବୁଲରେ

ଆଖି ପଡୁଥିବ ଯହିଁ ।

ଶାମୁକା ଭରା ମୁକ୍ତାରେ

ପଢ଼ିବ ବହିଟି ମନଧାନରଖି

ଜ୍ଞାନ ମିଳେ ଶ୍ରଦ୍ଧାଥିଲେ ।

ବହିଠାରୁ ବନ୍ଧୁ ନାହିଁ,

ବିପଦେ ଆପଦେ ଏକା ଏକା ଥିଲେ

ତା ଠାରୁ ସଖ୍ୟ ମିଳଇ ।

# ଧୀର ପାଣି ପଥର କାଟେ



ଧୀର ପାଣି ପଥର କାଟେ, କଥାରେ ଅଛିଟି ଭାଇ,
ସୁନାମ ପାଏ ସେ ସଂସାର ଯାକର ଧୀରେ ଯେ କାମ କରଇ ।
କଥା ଧୀରେ ଧୀରେ କହିଲେ ମଧୁରେ ସବୁରିଙ୍କୁ ଲାଗେ ମିଠା
ହାଉଁ ହାଉଁ ହୋଇ କାଁ କାଁ କଥା ମନ କରି ଦିଏ ଚିଟା ।
ଅମୃତ କଳସ ଧଡ୍ ଧାଡ୍ ଫିଙ୍ଗି କୁହ ଯେତେ ନିଅବୋଲି
ନେବା ଦୂରେ ଥାଉ, ନଚାହିଁ ସେଆଡ଼େ ସଭିଏଁ ଯାଆନ୍ତି ଚାଲି ।
ଭଲ କଥାଟିଏ ପାଟିତୁଣ୍ଡ କରି କହିଲେ ବିଫଳହୁଏ,
ମନ୍ଦପଛେ ହେଉ ମଧୁରେ କହିଲେ କହିବା ମହତ ରହେ ।

ଢୋ ଢୋ ଢୋ ବୁଲେଟ ଶାସନ କାହୁଁ ଭାରତ ମାନିଲା,

ଧୀର କଥା ପଦେ ଗାନ୍ଧୀ ବୁଢ଼ାଟିର ଇଂରେଜଙ୍କୁ ତଡ଼ିଦେଲା ।

ଧୀରସ୍ଥିର ଲୋକ ସାବଧାନ ବୁଦ୍ଧିମାନ ବୋଲି ଖ୍ୟାତହୁଏ,

ଚଞ୍ଚଳ ପ୍ରକୃତି କାମିକା ହେଲେବି ସେତେ ସମ୍ମାନ ନପାଏ ।



ଭୂଲ୍‌କାମ କେହି କରି ପକାଇଲେ ହଠାତ୍ ଚିଡ଼ି ନଯାଇ

ଧୀର ଭାବେ ତାକୁ ବୁଝାଇ କହିଲେ ଭୂଲ ଆଉ ହୁଏନାହିଁ ।

ବୁଝାମଣା କରି ସବୁ କାମକଲେ ମିଳେ ସଦା ସଫଳତା

ଧୀରତାରେ ମିଳେ ଧୈର୍ଯ୍ୟ ଆଉ ଶାନ୍ତି ମନେ ରଖ ଏହି କଥା ।

◆ ◆

# ଘୁରି ଘୁରିକା ନାରି



ଘୁରି ଘୁରି କା ନାରି, ଯିଏ ପାଇବ ତା'ରି ।

ଏମିତିକା ଏକ ଚିଜ, କିସ ଥରେ ମନେହେଜ ।

ବାଲୁତ କାଳଟି ପରା, ତା ପାଇଁ ଅଟେ ନିଆରା ।

ପଡି ଉଠି ବାରମ୍ବାର, ପାଇବ ଦେଖା ତାହାର ।

ବହିରୁ ଅବା ବାହାରୁ, ଭଲରୁ ଅବା ମନ୍ଦରୁ ।

ବଡଠିଁ ଅବା ସାନଠିଁ, ଖୋଜିବ ତାକୁ ସବୁଠିଁ ।

ସାତ ଗଇଁଠାଇ କାନି, ତାକୁ ସଞ୍ଚୁଥିବ ଆଣି ।

ବିନ୍ଦୁ ବିନ୍ଦୁ ଜଳ ଧରି, ସମୁଦ୍ର ହୁଏ ଯେପରି ।

ଛୋଟ ଛୋଟ ଅନୁଭୂତି ରଖିବ ସବୁ ସାଇତି ।

ନାଆରେ ଯେପରି କାତ, ଜ୍ଞାନ ଦେଖାଇବ ବାଟ ।

ଏକଥା ନ ଭୁଲ ପିଲେ, ଜ୍ଞାନ ଅରଜ ପହିଲେ ।

ଘୁରି ଘୁରିକା ନାରି, ଯିଏ ପାଏ ସିଏ ତା'ରି ।

◆ ◆

# ଏକ ଏକ ଏକତା



ଅକଲ ମକଲ ଟକଲ ଟିଆଁ
ଗୋଟାଏ ଉପରେ ଗୋଟାଏ ଠିଆ ।
ଏକରେ ଏକକୁ ମିଶାଇ ଦୁଇ
ହାତେ ହାତ ମିଶି ବଳ ବଢଇ,
ଗୋଟାଏ ମନରେ ଆରକେ ମନ
ମିଶିଲେ ସଂସାର ସୁଖରେ ପୂର୍ଣ୍ଣ ।



ଘର ଘର ହୋଇ ଗାଁଟି ଗଢ଼ା,

ଦେଶ ଗଢ଼ିବାକୁ ଗାଁଟି ଲୋଡ଼ା ।

ଗୋଟେ ଗୋଟେ ଇଟା ଗଢ଼େ ମହଲ,

ଛୋଟ ଛୋଟ କଥା ଦିଏ ଅକଲ ।

ବିନ୍ଦୁ ବିନ୍ଦୁ ଜଳ ସିନ୍ଧୁ ବିରାଟ

ଗୋଟେ ଗୋଟେ ଦାନା ହାଣ୍ଡିଏ ଭାତ ।

କଣାଏ ଧୂଳିରୁ ବିରାଟ ବୋମା,

ବିଶ୍ୱାସ ଏକଥା ହୁଏନା ଜମା ।

ଛୋଟକୁ, ଗୋଟିକୁ, ଦୂରେ ନଠେଲ,

ଅକଲ ମକଲ ଟିଆଁ ଟକଲ ।

◆ ◆

# କସ୍ତୁରୀ ମୃଗ



କସ୍ତୁରୀ ମୃଗଟି ଦେଖିଛ କେହି
ନିଜ ବାସରେ ସେ ପାଗଳହୋଇ
ବୁଲୁଥାଏ ଘୂରି ଘୂରି
ଜାଣେନା ନିଜେ ସେ ଏ ଅପୂର୍ବ ଚିଜ
ନିଜମଧ୍ୟେ ଅଛି ଧରି ।



ତାପରି ତୁମେ ସଭିଏଁ ପିଲେ,
ଅଯଥାରେ ଖାଲି ଡେଇଁ ବୁଲିଲେ
ମୁଣ୍ଡଟି ଘୂରିବା ସାର,
ନିଜ ଭିତରର ଗୁଣକୁ ଏବେଠୁଁ
ଚିହ୍ନିବାକୁ ଚେଷ୍ଟାକର ।

ତୁମ ଭିତରେ ଭବିଷ୍ୟ ପାଇଁ
ନେହରୁ ଗାନ୍ଧୀ, ମୋରାର, ଶାସ୍ତ୍ରୀ
ରେଡ୍ଡିଆ, ଲକ୍ଷ୍ମୀ, ସୁବାସ ବୋଷ .
ରଫି, ଲତା, ଆଶା, ମୁକେଶ



ଚନ୍ଦ୍ରଶେଖର, ସିଭିରମନ,
ଜଗଦୀଶ ବୋଷ୍, ରାଧାକୃଷନ
ସଭିଏଁ ଛନ୍ତି ଲୁଚି,
ଖୋଜରେ ନିଜ ଭିତରେ ଏଥୁଁ
ଯିଏ ରହି ଅଛନ୍ତି ।
କଢ଼ ଭିତରେ ବାସଟି ଥାଏ,
ଚହଟେ ହେଲେ ଫୁଲ
ଛୋଟରୁ ବଡ ହେବା କାଳରେ
ନିଜ ଗୁଣ ଯେ ବିକାଶ କରେ
ପାଏ ସେ ତାର ମୂଲ ।

◆ ◆

# ଇଁଚିଡ଼ି ମିଚିଡ଼ି



ଇଁଚିଡି ମିଚିଡି ଧାଇଁ ଚିଡି ଚିଡି
ପଢ଼ିସାରି ଖେଳି ଯିବା
ଖେଳ କସରତ କରି ଆମ ସ୍ୱାସ୍ଥ୍ୟ
ସର୍ବଦା ଭଲ ରଖିବା

ଇଁଚିଡି ମିଁଚିଡି କାଇଁଚ କାକୁଡି
ସବୁଜ ପରିବା ଖାଇ
ଜୀବନିକା ଯାହା ଲୋଡା ତା ଖାଇବା
ନୀରୋଗ ରହିବା ପାଇଁ ।





ସକାଳୁ ଉଠିବା ଘେରାଏ ବୁଲିବା
ଯାଇ ଖୋଲା ପବନରେ,
ପରିବେଶ ଶାନ୍ତ.ଦୂଷଣରହିତ
ରହିଥାଏ ସେତେବେଳେ ।
ଘୂରି ଘୂରି ଘେରେ ଦଉଡି ଆସିବା
ଦେହ ହୋଇବ ଚଞ୍ଚଳ,
ମୁହଁ ହାତ ଭଲ କରି ଧୋଇହେବା
ନେଇ ସଫା ଥଣ୍ଡାଜଳ ।



ମୁହଁ ହାତ ଧୋଇ ଖାଇବାକୁ ଯିବା
  ବୋଉ ବାଢ଼ିଦେବେ ଯାହା,
ଏଟା ଖାଇବିନି ସେଟା ଖାଇବିନି
  ବୋଲି ନଧରିବା ରାହା ।
ଇଁଚିଡି ମିଁଚିଡି ଧାଇଁ ଚିଡିଚିଡି
  କାଳିଆ ବଳଦଗଲା,
ସ୍ୱାସ୍ଥ୍ୟର ନିୟମ ମାନି କଲେ କାମ
  ରୋଗ କିଆଁ ହେବଭଲା ?

◆ ◆ ◆



# ନଈର ଇଚ୍ଛା

ନଈଟିଏ ଦିନେ କହିଲା ''ପାହାଡ ଭାଇ
କିସ ପାଇଁ ମୋତେ ବାନ୍ଧି ଧରିଚୁ ତୁହି ?
ଫିଟି ଯାଇ ତୋଠୁଁ ଡେଇଁ ବୁଲି ବଣ ବିଲ,
କସରତ ଖୋର ପିଲାଙ୍କ ପରି ମୁଁ ବଢାଇବି ମୋର ବଳ ।
ଛୋଟ ପିଲା କ୍ରମେ ବଡ ହେବାପରି
ଝରି ବଡ ହେବି ମୁହିଁ
ତୋହରି ଖୋଲର ସରୁଆ ଧାରରୁ ବଢି ।
ଦୁଇକୂଳେ ମୋର ଗଛବୃଛ ଯିବେ ଭରି
ହସିବ ସବୁଜ ଧାନମୁଗର କିଆରି,
ଛୋଟ ଛୋଟ ମୀନୁଁ ବଡ ବଡ ମାଛ ମାନେ,
ମୋ ମଧୁରଜଳେ ଖେଳୁଥିବେ ଖୁସିମନେ ।



ଛୋଟ ଛୋଟ ନାଆ ପାଲ ଦେଇଥିବେ ଭିଡି
ନାଉରୀଆ ଭାଇ କାତ ମାରୁ ମାରୁ ଗୀତ ଦେଇଥିବ ଛାଡ଼ି ।
ବଣ ଜଙ୍ଗଲରୁ ପଶୁପକ୍ଷୀ ଆସି ନିତି
ମୋ ପାଣି ପିଇବେ ପାଇବେ ପରମ ତୃପ୍ତି ।
ଛଳଛଳ କଳକଳ ଗୀତ ଗାଇ ଗାଇ
ସବୁରି ମନକୁ ସଦା ନେଉଥିବି ମୋହି ।"
ଖୁସିରେ ପାହାଡ କହିଲା- "କୁନି ଭଉଣୀ
ଏତେ ଆଶା ଅଛି ତୋ ମନେ ନଥିଲି ଜାଣି ।
ଯାଆ ତୁ ସହଳ ଆଉ ଡେରିକର ନାହିଁ
ଜଗତ କାରଣେ ଜୀବନ ଦେଏ ବିତେଇ" ।

◆ ◆

# ସହରକୁ କର ଗାଁ



ସହରକୁ କର ଗାଁ
ଜମି ଟାଖଣ୍ଡଟେ ଘର କଡେ ଥିଲେ
ବଗିଚା କରିବା ଠିଆ ।
କୋଡା ଖୋସା କରି ଶାଗମୁଗ ଦିଅବୁଣି,
ଦରକାର ବେଳେ ଚାରା ମୂଳେ ଦିଅ ପାଣି ।

ବାଡ଼ି କୋଣ ପଟେ ଲଗାଅ କୁନ୍ଦୁରୀ ମନ୍ଦା,
ଅନାବନା ସ୍ଥାନେ ବୁଣିବ ଶାକର କନ୍ଦା, ।
ଗଛମୂଳୁଁ ଯୁବ ଶିମ୍ବଲତା ଡାଳେ ମାଡ଼ି
କଖାରୁ, କଲରା, ସୁତୁଲିରେ ଉଠେ,
ନ କରି ପାରିଲେ ଭାଡ଼ି ।

କୁଣ୍ଡଟିରେ ପୋତ ଫୁଲ ଦୁଇଗଛ ଆଣି
ଫୁଲ ଫୁଟି ଗଲେ ସୁନ୍ଦର ଦିଶିବ,
ଦୁଇ ଓଳା ଦେବ ପାଣି ।
ନଳା ପାଣି କଡେ ପୋତିବ କଦଳୀ ଝାଡ଼,
ଆପେ ସେ ବଢ଼ିବ ବନ୍ତଳ ସୁଆଦବନ୍ତ ।







ଅଳ୍ପ ଶ୍ରମ କରି ପାଇବ ପରିବାସଞ୍ଜ,
ପଇସା ବଞ୍ଚିବ, ଦେହକୁ ହିତ ଏ ଚିଜ ।
ଚାଲ ପିଲାମାନେ
ଘର ବାଡି ଚଷି ବାଗ ବଗିଚା କରିବା,
ରାତି ପାହିଗଲେ ଲସର ପସର
ଆଉ ବଜାର ନ ଯିବା ।

◆ ◆

# ମହୁମାଛିର କଥା



ବିରୁଡିଟି ଥରେ କହିଲା ଦୁଃଖରେ 'ଶୁଣ୍ ମହୁମାଛି ନାନୀ,
ମୁଁ ତୋ ବଂଶେ ଜନ୍ମି, ତୋରି ରୂପ ଘେନି, ପ୍ରଶଂସା କିଆଁ ପାଏନି ?
ଚିତଉ ପରିକା ଖୋପଖୋପ ହୋଇ, ତୋର ମୋର ବସା ଏକ,
ମୋର ପିଲାଝିଲା ସଂସାରଧରିମୁଁ ରହେ ସେଠି ତୋ ପରିକା ।
ତୋତେ ସନମାନେ କିପାଁ ଲୋକମାନେ ସୁନ୍ଦର ପେଡିରେ ରଖି,
କେତେ ଯତନରେ ନିଜନିଜ ଘରେ, ଆଦର କରନ୍ତି ସଖି ।
ମୋତେ ଦେଖି କିଆଁ ଦୁର୍‌ଦାର ମାରି ଘଉଡାଇ ଦେଉଥାନ୍ତି,
ମୋ ବସାକୁ ଭାଙ୍ଗି ଦିଅନ୍ତି ଯେ ଫିଙ୍ଗି, ହିନିମାନ କରୁଥାନ୍ତି ।''
ମହୁମାଛି କହେ, ବିରୁଡି ନାନୀ ହେ, ପଚାରିଲୁ ଯେବେ ମୋତେ
ଗୁମର କଥାଟି ମନେ ରଖିବୁଟି କହିବି ମୁଁ ଯାହା ତୋତେ ।







ଦିନ ରାତି ମୁହିଁ କାମ କରୁଥାଇଁ ଫୁଲୁଁ ମହୁ ଖୁଣ୍ଟି ଖୁଣ୍ଟି,
ଫେଣା ଖୋପେ ମୋର ସବୁ ସଞ୍ଚି ଥାଏଁ ଲୋକଙ୍କୁ ଦେବାକୁ ବାଣ୍ଟି ।
ଜଗତର ଏଇ ଉପକାର ପାଇଁ ଜନମ ଅଟେ ମୋହର
ଏକଥା ବିଚାରି କାହାକୁ ନ ମାରେ, ଭାଙ୍ଗିଲେ ବି ବସାମୋର ।
ତୁହି ବଦରାଗି ଟିକିଏ କଥାରେ, ନାହୁଡର ନାତମାରୁ,
ତୋ ସାଥିରେ ପିଲେ ଗେଲରେ ଲାଗିଲେ ରୁଟୁକିନି କାମୁଡୁ ।
ତୁହି ଅଳସେଇ ବଞ୍ଚୁ ନିଜ ପାଇଁ, କାପାଇଁ କିଛି ନକରୁ
କେହି ଯଦି ତୋତେ ଆଦର ନକଲା, ସେକଥାକୁ କିଆଁ ଧରୁ ?
ଏ ସାରା ସଂସାରେ କେହି କାହାଠାରେ ଗୁଣ କିଛି ପାଇଥିଲେ,
ଆଦର କରନ୍ତି, ଘରକୁ ଡାକନ୍ତି ପ୍ରଶଂସା କରନ୍ତି ଭଲେ ।” ୨।

◆ ◆

# କୁନାର କଙ୍କି ଧରା



ମୁଣ୍ଡଟି ଗୋଟେ ଉଇଁଚ କୋଳି
ପରଦୁଇଟି ରଂଗୀନ ଢରି,
ଛାପି ଛାପିକା ଲାଞ୍ଜ ହଲାଇ
କଙ୍କି ବସିଚି, ପତରେ ଯାଇ ।

ସାରୁପତରେ ପାପୁଲି ଭରି,
କୁନା ଆସୁଛି କଙ୍କି ଧରି
ଛପି ଛପିକା ଚୋରଙ୍କ ପରି
କୁନା ଉଣ୍ଡୁଚି ସୁଯୋଗ ପାଇଁ ।
ସାରୁପତର ଠାପୁଲା ମାରି,
କଙ୍କିକି ନେଲାସେ କାବୁକରି
କଁ କଁ କଁ କଙ୍କି କାନ୍ଦିଲା,
କୁନାର ମନ ଦବି ନ ଗଲା ।

କେଡ଼େ ସୁନ୍ଦର କଙ୍କିଟିଏ
ଆକାଶେ ଉଡେ ଗୁଡ଼ିଟି ପ୍ରାୟେ,
ବହୁଦିନରୁ କୁନାର ମନ
କଙ୍କି ପାଇକି ନିତି ଉଚ୍ଛନ୍ନ
ଭାଙ୍ଗି ଲାଞ୍ଜେ ତା ସୂତୁଲି ଭରି,
ଉଡ଼ାଇ ଦେଲା ଘୁଡ଼ି ଟେ ପରି,
ଉଡ଼ିଲା ଉଞ୍ଚେ କଙ୍କିଟି ଯାଇ,
ଖୁସିରେ କୁନା ଉଠିଲା ଡେଇଁ ।





ଲଥି କିନି ମାଟି ଉପରେ
ପଡ଼ି କଙ୍କିଟି ବିକଳେ ଥରେ,
କିସ କରିବ କୁନା ଭାବୁଛି
ତା ଆଗେ କଙ୍କି ମରି ଯାଉଚି ।
କେଡେ ସୁନ୍ଦର କଙ୍କିଟି ଭଲା
ବଗିଚା ଶୋଭା ବଢ଼ାଉ ଥିଲା
କାହୁଁ ଆସିଲା କୁନା ତା ପାଇଁ
ନିଜ ଖେଳରେ ତା କାଳ ନେଇ
କାନ୍ଦିଲା କୁନା ଖାଲି କାନ୍ଦିଲା
ଶୁଣିବା ପାଇଁ କଙ୍କି ନଥିଲା ।

# ସ୍କୁଲରେ ପ୍ରଥମ ଦିନ



ବାପାବୋଉ ଦିହେଁ ଚାକିରୀ କରନ୍ତି
ସାନ ପୁପୁ ଥାଏ ଘରେ,
କେହି ବୋଲି କେହି ସାଥି ତା ନାହାନ୍ତି
ତାଲା ଝୁଲୁଛି ଦାଣ୍ଡରେ ।
କିଛି ଦିନ ପରେ ବାପା ମା ଭାବିଲେ
ନର୍ସରୀ ସ୍କୁଲଟି ଭଲ
ଏକା ଏକା ପୁପୁ ବୋର୍ ହେଉଅଛି
ଏଥର ଯାଉ ଇସ୍କୁଲ ।

ସ୍କୁଲ ପୋଷାକରେ ଆନନ୍ଦ ମନରେ
ଗଲା ବାପାଙ୍କ ସହିତ
ଇସ୍କୁଲ ପହଞ୍ଚି ହେଲା କୁଞ୍ଚି କାଞ୍ଚି
ନ ଛାଡ଼ିଲା ବାପା ହାତ ।
ସିଷ୍ଟର କହିଲେ 'ଭୟ ନାହିଁ କିଛି
ଅଛି ବହୁତ ଖେଳନା
ଗାଡ଼ି ଚଲେଇବ, ପେଁକାଳି ଫୁଙ୍କିବ,
ଖୋଜିବନି ଘର ଜମା ।'





ଖୁସିରେ ବସିଲା ଷ୍ଟିଅରିଂ ଧରିଲା
ପୁପୁ ଚଲାଇଲା ଗାଡ଼ି
ମଉକାଟେ ଦେଖି ବାପା ଗଲେ ଖସି
ଇସ୍କୁଲରେ ତାକୁ ଛାଡ଼ି ।



ଖେଳଛୁଟି ବେଳେ ବାରଣ୍ଡାଟି ତଳେ
ଲୁହ ଛଳ ଛଳ ହୋଇ,
ବଡ଼ ବିକଳରେ ପୁପୁ ଚାହିଁଥାଏ
ବାପା ଗଲେ ଅବା କାହିଁ ?
ବାପା ଆସି ତାକୁ ପଚାରିଲେ "ବାବୁ
କେମିତି ଲାଗିଲା ତୋତେ ?"
"ଅଳପ ସମୟ ଭଲ ଲାଗିଥିଲା
ତାପରେ କାନ୍ଦିଲି କେତେ ।
ଲୁହବୋହି ଗଲା ସିଂଘାଣି ଗଡ଼ିଲା
ତୁମକୁ ଖୋଜିଲି ବାପା



ସିଂଘାଣି ଲୁହ ମୋ କେହି ନ ପୋଛିଲେ
ଚାଟି ମୁହଁ କଲି ସଫା ।"
ଛାତିରେ କେଉଠି ଅଟକିଲା କିସ
ବାପାଙ୍କ ଆଖିରେ ଲୁହ
ଏତେ ଛୋଟ ପିଲା ସ୍କୁଲ ପଠେଇବା
କେବେ ବି ଉଚିତ ନୁହଁ ।

◆ ◆

# କାଉଠୁଁ ଶିକ୍ଷା



"କା କା ସ୍ୱର ବଡିଭୋରୁ ଶୁଣି କୁନା କହେ ରାଗିଯାଇ
କେତେ ଦୁଷ୍ଟପକ୍ଷୀ କୁଆ ତୁ କହନି ଶୋଇଟିକେ ଦେଉ ନାହିଁ ।
ଫିକ୍‌କିନି ହସି କହିଲା କାଉଟି ଉଡ଼ି ଉଡ଼ି ବୁଲି ନିତି
ସାନପିଲା ଠାରୁ ବୁଢ଼ାଙ୍କୁ ଉଠାଏଁ ପାହିଗଲେ ପ୍ରତି ରାତି ।

ସଭିଏଁ ବିଛଣା ଛାଡ଼ିବା ଆଗରୁ ବସାମୁହିଁ ଛାଡ଼ିଥାଏ,
ରାତିର ଅଇଁଠା କଣ୍ଟା ଯାହାଥାଏ ସଫାକରି ସବୁ ଖାଏଁ ।
ନହେଲେ ଆଉକେ ମାରିନେବ କାଳେ ରାତିର ଅଇଁଠା ଦାନା,
ହେଳା କଲେ ଭେଳା ବୁଡିଯାଏ ଭାଇ ଏକଥା କେବେ ଭୁଲନା ।"

ଅଳସୁଆ ଙ୍କୁ ତ ନମିଳଇ କେବେ ପ୍ରଶଂସା ବା ପୁରସ୍କାର,
ବଡ଼ି ସକାଳରୁ ଉଠିଲେ ପାଇବ ଖୋଜିଲା ଚିଜ ତୁମର ।
ପ୍ରକୃତିରେ ଅଟେ ମୁହିଁ ଝାଡୁଦାର, ଖୁଣ୍ଟି ଖାଣ୍ଟି ବାଡ଼ିଦ୍ୱାର
ପଚାସଢ଼ା ସବୁ ଗୋଟାଇ ନେଇ ମୁଁ କରି ଥାଏଁ ପରିଷ୍କାର ।



ସେ ପାଇଁ ସକାଳେ ପଚାସଢା କିଛି କେଉଁଠି ପଡିନଥାଏ,
ଦୁର୍ଗନ୍ଧ ଦୂଷିତ ପରିବେଶ ମୋର କାମ ପାଇଁ କମିଯାଏ ।
ଶୋଇଲା ପୁଅର କେଉଁଥିରେ କେବେ ଭାଗ ନଥାଏ ଟି ଜାଣ
ସକାଳୁ ମୁଁ ଡାକି ଉଠାଏ ତୁମକୁ କରିଯିବ ନିଜ କାମ ।

# କାମର ଅନ୍ୟ ନାଁ ଖୁସି



ଦେଖିଥିବ ପିଲେ ଗୋଲାପ ଫୁଲଟି

ହସୁଥାଏ ଚହଚହ,

ପାଖେ ଗଲେ ତାର ଖୁସିଲାଗେ

ବାସ ଚହଟଇ ମହମହ ।

ଅସାବଧାନରେ ତୋଳିବାକୁ ତାକୁ

କେବେ ହାତ ବଢ଼ାଇଲେ

ତା ଗଛର କଣ୍ଟା ତମ କୁନି କୁନି

ହାତେ ଫୁଟି ଯାଇପାରେ

ଭଲଟିଏ କିଛି ପାଇବାକୁ ହେଲେ
କଷ୍ଟ କରିବାକୁ ହୁଏ,
ପରିଶ୍ରମ ଆଉ ସାଧନା ବିନା ଏ
ମଣିଷ କିଛି ନପାଏ
ମାଆଠାରୁ କ୍ଷୀର ପିଇବା ପାଇଁକି
ଶିଶୁ କାନ୍ଦେ କୁଆଁ କୁଆଁ,
କାହାଠାରୁ କିଛି ପାଇବାକୁ ହେଲେ
ପହିଲେ ମଥାଟି ନୁଆଁ ।





ଶିକ୍ଷକଙ୍କ ଠାରୁ ଶିଖିବାକୁ
ମନକଲେ ଭଲକଥାଟିଏ
ବେତର ପାହାର, ଏକ ଗୋଡ଼ିକିଆ,
କୁକୁଡ଼ା ହେବାକୁ ହୁଏ ।
ବଡ଼ ହେବା ପାଇଁ ଚାହଁ ଯଦି
ଆଗ କରିବାକୁ ହେବ କାମ,
ବଡଙ୍କ ତାଡ଼ନା ଆଖିବୁଜା
ସହି ନେବାକୁ ହେବ ସୁନାମ ।

କଷ୍ଟ କଲେ ସିନା କୃଷ୍ଣ ମିଳିଥାଏ

କଷ୍ଟ ବିନା ଖୁସି କାହିଁ ?

ମହୁ ଖାଇବାକୁ ମନଥିଲେ

ନିଅ ମହୁମାଛି ବିନ୍ଧା ସହି ।

ଖୁସିର ଅପର ନାମଟି ଯେ କାମ

କାମ କଲେ ଖୁସିମନ

କାମେ ଲାଗିଥିଲେ ଖରାପ

କଥାକୁ ଆପେ ତଡ଼ିଦିଏ ମନ ।




ଦୁଷ୍ଟ ପିଲା ବଦଳିଲା !
ପିଲାଟିଏ ଥିଲା ବଡ଼ ଚଗଲା
ବାପାଙ୍କ ମାଡୁଆ ବୋଉଙ୍କ ଗେହ୍ଲା ।
ପାଠପଢ଼ିବାର ବୟସ ହେଲା
ସାଙ୍ଗସାଥୀ ମେଳେ ଇସ୍କୁଲ ଗଲା
ଚଗଲା ଗୁଣ ତା ଚିଡିଲେ ସାର୍
କରିଲେ ତାକୁ କ୍ଲାସରୁ ବାହାର ।
ଘରେ ବାପା ଶୁଣି ଗଲେ ବିଗିଡ଼ି
ରାଗରେ କାନକୁ ଦେଲେ ତା ମୋଡ଼ି ।

ଶାସନ ଦେଖାଇ କହିଲେ ବୋଉ

"ଏତେ ଗେଲ ପାଇ ଦୁଷ୍ଟ ତୁ ହେଉ ।"

ଘରକୁ ସେ ଜେଲ୍‌ପରି ଭାବିଲା

ଚୁପ୍ ଚାପ୍ ଦିନେ ପଳାଇ ଗଲା ।



ରେଳଷ୍ଟେସନରେ ଧରିଲା ଗାଡ଼ି,

ଯେଣେ ଇଚ୍ଛା ତେଣେ ଯିବ ଯେ ଉଡ଼ି ।

କୁଆଡ଼େ ଥିଲେ ସେ ଟିକଟବାବୁ

ଟିକେଟ ନାହିଁ ତା, କରିଲେ କାବୁ ।







କହିଲେ ଚାଲ୍ ତୁ ପୁଲିସି ଥାନା
ପୁଲିସ୍ ଭୟେ ସେ ହେଲା ଛାନିଆଁ ।
କହିଲା ବିନୟେ ବାପାଙ୍କ ନାଆଁ
ଘଟିଥିଲା ଘରେ ଘଟଣାଯାହା ।
ଘରେ କି ବାହାରେ ନିସ୍ତାର ନାହିଁ
ଚଗଲା ପିଲାଙ୍କୁ ଶାସନ ପାଇଁ ।
ପୁଲିସି ଛାଡିଲେ ନେଇ ତା ଘରେ
ଚଗଲାମି ଛାଡିଗଲା ଭୟରେ ।
ପରିବାର ସ୍ୱର୍ଗ ପିଲାଙ୍କ ପାଇଁ
ଛାଡିଲେ ବିପଦ ନିଷ୍ଚେ ଆସଇ ।
ଛାଡି ଦେଲେ ସବୁ ଦୁଷ୍ଟାମୀ ପଣ
ପ୍ରିୟ ସବୁଠାରେ ହୋଇବ ଜାଣ ।

◆ ◆

# ବାପାମା ବଡ଼ ଗୁରୁ





ସାନବେଲୁ ସିଏ ବେଶୀ କଥା କହେ
କରେ ସଦା ପାଟି ଗୋଳ,
ଗେଲରେ ଢେଙ୍କେମା କୁହନ୍ତି ତା ନାଁ
"ରାଉରାଉ ପାଟିଆଳ"।
ଘରେ ସବୁବେଳେ ବକ୍ ବକ୍ ହେଲେ
ଚିଡନ୍ତି ତାକୁ ସଭିଏଁ
ହୃଦୟ ଟା ତାର ବଡ ନିରିମଳ
ଏକଥା ବୁଝେ ବା କିଏ ?
ସାଇପଡିଶାଙ୍କ ସବୁ ବୋଲହାକ
ନିରଳସେ କରିଦିଏ
ଘରେ କିନ୍ତୁ ବୋଉ ଯେତେ କହୁ ଥାଉ
କିଛି କାନକୁ ନନିଏ ।


ବୋଉର ପଦକୁ ଦଶଟି ପଦରେ
ଅଯଥା ବିତଣ୍ଡା କରେ,
ଗୋଟାଏ ବୋଲି ବି ବୋଉଙ୍କ ବରାଦି
କରେ ନା କେଭେଁ ଶାନ୍ତିରେ ।
ତାର ମତି ଦେଖି ବୋଉ ବୁଝାଇଲେ
ସୁନା ଧନ ବୋଲି କରି,
ମଧୁର ରୁ ପିତା ଯାଏଁ ଯାଏ କଥା
ସବୁ ଯୁକ୍ତି ଯାଏ ହାରି ।
ମୁଣ୍ଡେ ହାତ ଦେଇ ବୋଉ ହୁଅନ୍ତି କହି
"ବୁଝୁନୁ ତୁ ସିନା ଧନ
ଘରର ସ୍ୱାଭବ ନିଶ୍ଚେ ପ୍ରକାଶିବ
ବାହାରେ ତୋ କେଉଁଦିନ ।



ନିଜବାପା ମାଙ୍କୁ ସରଗ ଧରିତ୍ରୀ
　　ମାନିଥାନ୍ତି ସବୁପିଲା,
ତୋ ଠାରେ କିପରି ୟା'ର ବିପରୀତ
　　ଘଟୁଚି କହତ ଭଲା ?"
ବେଖାତିର କରି ମୁହଁକୁ ନେଫେଡି
　　ଚାଲିଯାଏ ସେଇ ପିଲା,
ଦିନେ କିନ୍ତୁ ତାର ବୋଉଙ୍କର କଥା
　　ସତକୁ ସତ ଫଳିଲା ।

ବାହାର ସାଂଗଙ୍କ ସହିତ ବିତର୍କ
　　ହେଲା ଦିନେ ସେ ପିଲାର,
ପଡିଶାଏ ସେଠି ଦେଖୁଥିଲେ ସବୁ,
　　ସାହା ନହେଲେ କେ ତାର



ବିତଣ୍ଡା ବଢିଲା ମାଡଗୋଳ ହେଲା,
　　ସାଂଗମାନେ ଦେଲେପିଟି
ମୁରୁଖ ପିଲାଟି ଛଟପଟ ହେଲା
　　ଓଠ ଫାଳେ ଗଲା ଫାଟି ।

ଘରକୁ ଫେରିସେ ବୋଉଙ୍କୁ କହିଲା
ଦୋଷ ତାର କିଛି ନାହିଁ
'ଦୋଷ ନ ଥିଲେ ବି ଅଯଥା ବିତର୍କ
କରିଥିବୁ ନିଶ୍ଚେ ତୁହି ।
କେଉଁଠି କିପରି ଚଳିବାକୁ ହୁଏ
ଶିଖାଇଲେ ନଶିଖିଲୁ,
ବାପା ବୋଉଙ୍କର ସବୁ ଉପଦେଶ
ଅଯଥା ବୋଲି ଭାବିଲୁ ।
ବାପାବୋଉ ବଡ ଗୁରୁ ପିଲାଙ୍କର
ଯେ ମାନଇ ତାଙ୍କ କଥା
ବିଦ୍ୟାବୁଦ୍ଧି ଆଉ ବିନୟ ବଳରେ
ହୁଏ ସେ ଜଗତଜିତା ।'

◆ ◆






ବାପାଙ୍କ ପାକିଟି ପଇସାରେ ଭର୍ତ୍ତି

ଏକ ତାରିଖ ମାସର,

କୁନାମନ ଖୁସି ସତେକି ପଡ଼ିଚି

ତାର କଚେପୁଅବାର ।



ଜାମାଟିକୁ ଏବେ ବାପା ଟାଙ୍ଗିଦେବେ

ଧୋଇ ଯିବେ ବାଥରୁମ୍

ଆଖି ପିଛୁଳାକେ କୁନା ସାରିଦେବ

କାମ ତାର ଗୁମ୍‌ସୁମ୍ ।



ସାଙ୍ଗ ସାଥି ପିଲେ ଖେଳଛୁଟିବେଳେ

ଖା'ନ୍ତି ଆଳୁଚପ୍ ବରା,

କୁନା ଖାଉଥାଏ ପାଉଁରୋଟିଟିଏ

ଅଣ୍ଡାମଖା ଜାମ୍ ଭରା ।

ପାଣିପୁରି ବାଲା ହାତଠାରୁ ଥିଲା

"ଆସହେ ଆସହେ ପିଲା

ସଅଳ ଖାଇବ ପଇସା ଥୋଇବ

ମଜା ସବୁ ସରିଗଲା ।"

ପଞ୍ଚେ ପିଲା ସେଠି ଟପ୍‌ଟାପ୍ କରି

ଯାଉଥାନ୍ତି ତାକୁ ଗିଳି

ବୋଉଙ୍କ ତାଗିଦା ଦୋକାନରୁ କୁନା

ଖାଇବନି କିଛି କିଣି ।

ଝାଡ଼ାବାନ୍ତି ହେବ ଅମ୍ଳ କୁଟିବ

ପେଟ ଅନ୍ତ ନାଡ଼ି ଫାଡି

ବୋଉ କଥାମାନି ଏଯାଏଁ ରହିଛି

ଲାଳପଛେ ଯାଉ ଗଡ଼ି ।

ଚାଟ୍‌ବାଲା କେବେ ଡାକି ଡାକି ଗଲେ

ତା ଘର ସାମନା ବାଟେ

ମନ ହାଇଁ ପାଇଁ କୁନା ପାଖେ ନାହିଁ

ଫଟା ପାହୁଲା ବି ଗୋଟେ ।

ଯୋଗ ପଡିଅଛି ଶିକା ଛିଡିଅଛି

ବାପାଙ୍କ ପକେଟୁ କାଢ଼ି

ତରବରେ କୁନା ପଇସା ଆଣିଲା

ହାତୁ ଟଙ୍କା ଗଲାପଡ଼ି ।





ଠନ୍ ଠନ୍ ଶୁଣି ଦୁମ୍ ଦୁମ୍ କରି

ଦଉଡ଼ି ଆସିଲେ ବାପା

ଧରାପଡି କୁନା ଭୟରେ ଥରିଲା

ବାପା ହେବେ ନିଶ୍ଚେ ଖପା ।

କୁନା ମାନିଗଲା କାହିଁକି ପଇସା

ଚୋରି କରୁଥିଲା ସିଏ,

ବୋଉଙ୍କୁ କହିଲେ କୁନାକୁ ପହିଲେ

ପାଣି ପୁରି କରି ଦେଏ ।

ଘରେ ରନ୍ଧାହେଲା ପାଣି ପୁରି ଚାଟ

ସାଥିଙ୍କ ସହିତେ ବସି

ମନବୋଧ କରି ଖାଇଲେ ସମସ୍ତେ

କୁନା ହୋଇଗଲା ଖୁସି ।

ଲାଜପାଇ ମନେ ନିଜ କାମ ପାଇଁ

କୁନା କଲା ଦୃଢପଣ

ବାଜେ ଜିନିଷରେ ମନ ଦେବନାହିଁ

ଯେ ଯାଏଁ ଥିବ ଜୀବନ ।

◆ ◆

ଜଗତକୁ ଚିହ୍ନିବାର ପ୍ରକ୍ରିୟା ମଧ୍ୟରେ ଯେଉଁ ପୁପୁ ଓ କିଟିମାନଙ୍କର ବାଲ୍ୟ-ଅବୋଧତା, ଅଝଟପଣିଆ ଓ ତଟସ୍ଥ ଅଭିଜ୍ଞତା ମୋର ମମତ୍ୱକୁ ବାରଂବାର ବିଗଳିତ କରିଛି - ଗୋଟି ଗୋଟି ଶବ୍ଦ, ଭାବ ଓ ଆବେଗକୁ କବିତାର ଫୁଆର ଭିତରେ ଝର୍ ଝର୍ ନଦୀ ପରି ବୁହାଇ ଦେଇଛି, ଜଗତଯାକର ସେହି ସବୁ ପୁପୁ, କିଟି, କୁନା ଓ ମୀନାମାନଙ୍କ ହାତରେ ଏ ବହିଟି ଟେକି ଦେଉଛି -

— ଲେଖିକା

